सुभाषित-१

**शैले शैले न माणिक्यं**

**मौक्तिकं न गजे गजे**

**साधवो न हि सर्वत्र**

**चन्दनं न वने वने ||**

ଶଇଶେ ଶଇଳେ ମାଣିକ୍ୟ ନ ମିଳେ,

ଗଜେ ଗଜେ ମୋତିଧନ ।

ବନେ ବନେ କାହିଁ ଚନ୍ଦନ ବି ନାହିଁ,

ଗ୍ରାମେ ଗ୍ରାମେ ମହଜ୍ଜନ ॥ :୦୧

ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୨

**शतेषु जायते शूरः सहस्त्रेषु च पण्डितः |**

**वक्ता दशसहस्त्रेषु दाता भवति वा न वा ||**

ଶତେକରେ ଜଣେ ବୀର

ସହସ୍ରକେ କେହି ଜ୍ଞାତା ।

ଅୟୁତେ କେ ବାଗୀଶ୍ୱର

ଜଗତେ ବିରଳ ଦାତା ॥ :୨

ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୩

**पिण्डे पिण्डे मतिर्भिन्ना कुण्डे कुण्डे नवं पयः ।**

**जातौ जातौ नवचाराःनवावाणी मुखे मुखे ॥**

ଘଟେ ଘଟେ ଭିନ୍ନ ମତି

ପାତ୍ରେ ପାତ୍ରେ ଭିନ୍ନ ପାଣି ।

ଘରେ ଘରେ ଭିନ୍ନ ରୀତି

ମୁଖେ ମୁଖେ ଭିନ୍ନ ବାଣୀ ॥ :୩

ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୪

पृथिव्याम् त्रीणि रत्नानि जलमन्नम् सुभाषितम् |
मूढैः पाषाणखण्डेषु रत्नसञ्ज्ञा प्रदीयते ||
ଧରା ବକ୍ଷେ ଭରା ତ୍ରିରତ୍ନପସରା:
ଅନ୍ନ ଜଳ ହିତବାଣୀ,
ମୂଢଜନଚିତ୍ତ ହୁଏ ସମ୍ମୋହିତ
ପ୍ରସ୍ତରେ ରତନ ଜାଣି ॥ :୪
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୫

नाभिषेको न सङ्स्कारः सिंहस्य क्रियते वने ।
विक्रमार्जितसत्त्वस्य स्वयमेव मृगेंद्रता ।।
ଅରଣ୍ୟରାଜାର ହୁଏନା ସଂସ୍କାର
ଅବା ରାଜ୍ୟ-ଅଭିଷେକ;
ପରାକ୍ରମ ବଳେ ସହଜ କୌଶଳେ
ରାଜପଣେ ରଖେ ଟେକ :୫
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୬

चन्दनम् शीतलम् लोके चंदनादपि चंद्रमा: |
चन्द्रचन्दनयोर्मध्ये शीतला साधुसंगति: ||
ଶୀତଳ ଚନ୍ଦନ, ଶୀତାଂଶୁକିରଣ
ତାହାଠାରୁ ସୁଶୀତଳ,
ତହୁଁ ବଳି ଅତି ସଜ୍ଜନସଂଗତି
ଶୁଭାଶିଷ ସୁବିମଳ ॥ :୬
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୭

कर्तव्यम् आचरं कामम् अकर्तव्यम् अनाचरम् |
तिष्ठति प्राकृताचारो य स: आर्य इति स्मृत: ||
କର୍ତ୍ତବ୍ୟ ଆଚରେ ନିତ୍ୟ
ଅକର୍ତ୍ତବ୍ୟ ଥାଏ ଦୂରେ
ସଦାଚାରୀ ଆର୍ଯ୍ୟସୁତ
ନିଶ୍ଚୟ ସେ ମର୍ତ୍ତ୍ୟପୁରେ । :୭

ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୮

समानी सन्तु आकूति: समाना हृदयानि व: |
समानमस्तु वो मनो यथा व: सुसहासति ||
ହୁଅ ଏକାକାର, ହୃଦୟକାସାର
ସର୍ବେ କର ଏକରୂପ,
ମିଶି ଯାଉ ମନ କର୍ମସମ୍ପାଦନ
ହେଉ ନିତ୍ୟ ଅପରୂପ ॥ :୮
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୯

कर्तव्यम् आचरं कामम् अकर्तव्यम् अनाचरम् |
तिष्ठति प्राकृताचारो य स: आर्य इति स्मृत: ||
କର୍ତ୍ତବ୍ୟ ଆଚରେ ନିତ୍ୟ
ଅକର୍ତ୍ତବ୍ୟଠାରୁ ଦୂରେ
ସଦାଚାରୀ ଆର୍ଯ୍ୟସୁତ
ନିଶ୍ଚୟ ସେ ମର୍ତ୍ତ୍ୟପୁରେ । :୯
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୧୦

परोऽपि हितवान् बन्धु: ,बन्धुरप्यहित: पर: |
अहित: देहजो व्याधि: , हितमारण्यमौषधम् ||
ପର କଲେ ହିତ, ସ୍ୱଜନ ଅହିତ,
ପରକୁ ହିଁ ମିତ ଜାଣ;
ଶରୀରସ୍ଥ ବ୍ୟାଧି ଜ୍ୱାଳା ଦିଏ ସାଧି,
ବନୌଷଧି କରେ ତ୍ରାଣ । :୧୦
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୧୧

परस्परविरोधे तु वयं पंचश्च ते शतम् |
परैस्तु विग्रहे प्राप्ते वयं पंचाधिकं शतम् ||
ନିଜ ପରିବାରେ ବୈରତା ବିଚାରେ
ସିଏ ଶହେ ଆମେ ପାଞ୍ଚ;
ବହିଃସ୍ଥ ବଇରୀ ଅଛି ଏବେ ଘେରି

ଆମେ ତେଣୁ ଶହେପାଞ୍ଚ । :୧୧

(ପାଣ୍ଡବଙ୍କ ବନବାସ ବେଳେ ଗନ୍ଧର୍ବମାନେ କୌରବଙ୍କୁ ଯୁଦ୍ଧରେ ହରାଇ ବନ୍ଦୀ କରିଥିବା ସମ୍ବାଦ ପାଇ ଆନନ୍ଦଗଦ୍ଗଦ ଭୀମଙ୍କୁ ଯୁଧିଷ୍ଠିର କହି ଥିଲେ ।)

ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୧୨

**राजा राष्ट्रकृतं पापं  यज्ञपापं पुरोहितः |**
**भर्ता च स्त्रीकृतं पापं शिष्यपापं गुरूः तथा ||**

ରାଷ୍ଟ୍ରପାପେ ବହେ ରାଜା,
ଯଜ୍ଞପାପ ପୁରୋହିତ,
ଭାର୍ଯ୍ୟା ପାପେ ସହେ ସ୍ୱାମୀ
ଶିଷ୍ୟପାପକୁ ପଣ୍ଡିତ ।:୧୨

ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୧୩

**अधमाः धनमिच्छन्ति      धनं मानं च मध्यमाः |**
**उत्तमाः मानमिच्छन्ति     मानो हि महताम् धनम् ||**

ଅଧମ ମନ ଧନ ପାଶେ
ମଧ୍ୟମ ଖୋଜେ ଧନ, ମାନ,
ଉତ୍ତମ ଜୀଏ ମାନ ଆଶେ
ଅନ୍ୟତ୍ର ଦିଏ ନାହିଁ ଧ୍ୟାନ॥ :୧୩

ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୧୪

**व्यसने मित्रपरीक्षा सूरस्य च रणाङ्गणे |**
**विनये भृत्यपरीक्षा दानपरीक्षा दुर्भिक्षे ||**

ଆପଦେ ମିତ୍ରପରୀକ୍ଷା,
ରଣାଙ୍ଗନେ ବୀର ଦିଏ
ବିନୟେ ଭୃତ୍ୟପରୀକ୍ଷା,
ମହାକାଳେ ଦାତା ଯିଏ । :୧୪

ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୧୫

ये च मूढतमा: लोके ये च बुद्धे: परं गता: |
ते एव सुखम् एधन्ते मध्यम: क्लिश्यते जन: ||
ଜ୍ଞାନୀ ବୁଦ୍ଧଜନ            କରି ସମାଧାନ,
ଆପଦ ନ ବୁଝି ମୂଢ
ରହନ୍ତି ହରଷେ;          ମଧମେ ବରଷେ
କ୍ଲେଶରାଶି କୁଢ କୁଢ ॥ :୧୫
महाभारत
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୧୬

अतितृष्णा न कर्तव्या तृष्णां नैव परित्यजेत |
शनै: शनैश्च भोक्तव्यं स्वयं वित्तमुपार्जितम ||
କରିବ ବ୍ୟଥିତ           ତୃଷ୍ଣା ଅତିରିକ୍ତ,
ତୃଷ୍ଣାନାଶ ଦୈନ୍ୟଗତି
ତୃଷ୍ଣାରୁ କିଞ୍ଚିତ          କରି ସୁସଞ୍ଚିତ
ଅର୍ଥାଗମେ ରଖ ମତି। :୧୬
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୧୭

वृथा वृष्टि: समुद्रेषु वृथा तृप्तेषु भोजनम् |
वृथा दानं धनाढ्येषु वृथा दीपो दिवाऽपि च ||
ପୂର୍ଣ୍ଣୋଦରେ ବୃଥା ଭୋଜ୍ୟ,
ପର୍ଜନ୍ୟ ପୟୋଧି ବକ୍ଷେ ।
ଧନାଢ୍ୟେ ଦାନ କି କାର୍ଯ୍ୟ,
ଦୀପଶିଖା ଦିବାଲୋକେ ! :୧୭
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୧୮

पिबन्ति नद्य: स्वयम् एव नाम्भ: स्वयं न खादन्ति फलानि वृक्षा: |
न अदन्ति सस्यं खलु वारिवाहा परोपकाराय सतां विभूतय: ||

ଦେଖିଅଛ କିଏ          ନଦୀ ଜଳ ପିଏ,
        ବୃକ୍ଷ କରେ ଫଳାହାର?
ସ୍ନାନ ନିଜେ ଘନ          ନ କରି ବହନ
        କରେ ପର ଉପକାର ॥ ୧୮
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୧୯

क्रोधो वैवस्वतो राजा तृष्णा वैतरणी नदी |
विद्या कामदुघा धेनु: सन्तोषो नन्दनं वनम् ||
शुक्रनीति
କ୍ରୋଧ ଜଗତର          ମରଣ ଆକର
        ତୃଷ୍ଣା ଉଷ୍ଣ ପ୍ରସ୍ରବଣ,
ଏକା ବିଦ୍ୟାଜ୍ଞାନ          କାମଧେନୁ ଜାଣ,
        ସନ୍ତୋଷ ନନ୍ଦନବନ । :୧୯
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୨୦

लोभमूलानि पापानि संकटानि तथैव च |
लोभात्प्रवर्तते वैरं अतिलोभात्विनश्यति ||
ନାନା ଜାତି ପାପ          ସଂକଟ ସନ୍ତାପ
        ନିବସନ୍ତି ଲୋଭ କୋଳେ,
ତହୁଁ ବୈରଭାବ          ହୁଏ ଆବିର୍ଭାବ:
        ଅତି ନିଏ ମୃତ୍ୟୁଦୋଳେ ॥ :୨୦
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

धैर्य यस्य पिता क्षमा च जननी शान्ति: चिरं गेहिनी सत्यं सूनु:
अयं दया च भगिनी भ्राता मन:संयम: |
शय्या भूमितलं दिश: अपि वसनं ज्ञानामृतम् भोजनम् एते यस्य
कुटुम्बिन: वद सखे कस्माद् भयं योगिन: ||

ସୁଭାଷିତ-୨୧

महाजनस्य संसर्ग: कस्य नोन्नतिकारक: |
पद्मपत्रस्थितं तोयं धत्ते मुक्ताफलश्रियम् ||

ପଦ୍ମପତ୍ରେ ଜଳ  ଯଥା ସମୁଜ୍ଜ୍ୱଳ
 ମୁକ୍ତାବିନ୍ଦୁଟିଏ ପରି,
ତଥା ବୁଦ୍ଧିମାନ  ଥାଏ ତେଜୀୟାନ
 ସାଧୁଜନସଙ୍ଗ କରି ॥ :୨୧

ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୨୨

मूर्खो न हि ददात्यर्थं नरो दारिद्र्याशङ्कया |
प्राज्ञः तु वितरत्यर्थं नरो दारिद्र्याशङ्कया ||

ନିର୍ଦ୍ଧନତା ଭୟେ  ନିର୍ବୋଧ ନ ଦିଏ,
 ବିଜ୍ଞ କିନ୍ତୁ ରତ ଦାନେ;
ଥାଏ ତାର ଭାବ -  ଦାନ ତ ନ ହେବ
 ସମ୍ପନ୍ନତା ଅବସାନେ ॥ :୨୨

**भोजप्रबंध**

ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୨୩

स्वभावो नोपदेशेन शक्यते कर्तुमन्यथा |
सुतप्तमपि पानीयं पुनर्गच्छति शीतताम् ||

ଉତ୍ତପ୍ତ ସଲିଳ  ପାଲଟେ ଶୀତଳ
 ରହି ରହି ଅବଶେଷେ
ଦୁର୍ଜନ ସ୍ୱଭାବ  ହୁଏ ଆବିର୍ଭାବ,
 ବଦଳେ ନା ଉପଦେଶ ॥ :୨୩

ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୨୪

यस्मिन् जीवति जीवन्ति बहव: स तु जीवति |
काकोऽपि किं न कुरूते चञ्च्वा स्वोदरपूरणम् ||

ଯିଏ ବଞ୍ଚିବାରେ ବଞ୍ଚନ୍ତି ସଂସାରେ
ଆନ ଜନ ସକୁଶଳେ
ସେ ସିନା ଜୀବନ କାକ ବି ତ ଅନ୍ନ
ଭୁଞ୍ଜିଥାଏ ଚଞ୍ଚୁ ବଳେ ॥ :୨୪

पंचतंत्र

ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୨୫

दानेन तुल्यो विधिरास्ति नान्यो लोभोच नान्योस्ति रिपु: पृथिव्या
|
विभूषणं शीलसमं च नान्यत् सन्तोषतुल्यं धनमस्ति नान्यत् ||

ଉତ୍ସବ ବିଧାନ କାହିଁ ଯଥା ଦାନ,
ଲୋଭସମ କାହିଁ ଅରି?
କାହିଁ ଆଭୂଷଣ ଶୀଳତା ପ୍ରମାଣ,
ସମ୍ପଦ ସନ୍ତୋଷ ପରି ? :୨୫

ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୨୬

संरोहति अग्नीना दग्धं वनं परशुना हतम् |
वाचा दुरुक्तम् वीभत्सं न संरोहति वाक्शतम् ||

ହୁତାଶଦହନ କୁଠାରକର୍ତ୍ତନ
ସହି ବଢେ ଉପବନ;
କଟୁବାକ୍ୟେ ଥରେ ଭାଜିଗଲା ପରେ
ଆଉ କି ମଞ୍ଜରେ ମନ? :୨୬

(ଯୁଧିଷ୍ଠିରଙ୍କୁ ଭୀଷ୍ମଙ୍କ ଉପଦେଶ)

ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୨୭

अहो दुर्जनसंसर्गात् मानहानि: पदे पदे |
पावको लोहसंगेन मुद्गरैरभिताड्यते ||

ଦୁର୍ଜନସଙ୍ଗତି କରେ ପାର୍ଶ୍ଵବର୍ତ୍ତୀ
ପଦେ ପଦେ ପରିହାର,
ଅଶ୍ମଜ ମୁଦ୍ଗର ସଙ୍ଗତେ ଭାସ୍କର
ପାଏ ଯଥା ସମ୍ପ୍ରହାର ॥ :୨୭

ଅଶ୍ମଜ= ଲୁହା; ପରିହାର= ଅସମ୍ମାନ; ମୁଦ୍ଗର= ହାତୁଡି; ଭାସ୍କର= ସୁନା;
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୨୮

द्वौ अम्भसि निवेष्टव्यौ गले बद्ध्वा दृढां शिलाम् |
धनवन्तम् अदातारम् दरिद्रं च अतपस्विनम् ||

ଶିଳା ବାନ୍ଧି ଗଳେ ନିକ୍ଷେପିବ ଜଳେ
ବେନିଜନେ ଅତର୍କିତ:
ଅଦାତା ଧନିକ, ରିକ୍ତକପର୍ଦ୍ଦକ
ଶ୍ରମେ ଯିଏ ଭୟଭୀତ ॥ :୨୮

(ବିଦୁରନୀତି, ଶ୍ରୀମହାଭାରତଗ୍ରନ୍ଥରେ)
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୨୯

चिता चिन्तासमा हि उक्तम् बिन्दुमात्रविशेषत: |
सजीवं दहते चिन्ता निर्जीवं दहते चिता ||

ଚିତା ସମା ଚିନ୍ତା ସଧର୍ମା କଥିତା,
ଶଶୀକଳା ବ୍ୟବଧାନେ,
ଚିତା ଜାଳେ ଶବ, ଚିନ୍ତା ଅବୟବ
ଜୀବନ୍ତରେ ପ୍ରତି କ୍ଷଣେ ॥ ୨୯

ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୩୦

अङ्गणवेदी वसुधा कुल्या जलधि: स्थली च पातालम् |
वाल्मिक: च सुमेरू: कृतप्रतिज्ञाम्पस्य धीरस्य ||

କୃତସତ୍ୟେ ଧରା    ଉଦ୍ୟାନ ରୁଚିରା,
ସାଗର ସାମାନ୍ୟ ଝର,
ପାତାଳ ବିହାର,    ମେରୁ କୀଟୋତ୍କର,
ସର୍ବବିଘ୍ନ କ୍ରୀଡା ଘର ॥ ୩୦
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୩୧
येषां न विद्या न तपो न दानं ज्ञाम्पनं न शीलं न गुणो न धर्म: |
ते मत्र्यलोके भुविभारभूता मनुष्यरूपेण मृगाश्चरन्ति ||
ଶିକ୍ଷାରୁ ବିମୁଖ    ଶ୍ରମେ ଅନିଚ୍ଛୁକ
ଦାନଜ୍ଞାନହୀନ ସେହି
ଚରିତ୍ର ସ୍ଖଳିତ    ଧର୍ମରୁ ପତିତ,
ପଶୁତୁଲ୍ୟ ନରଦେହୀ ॥ :୩୧
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୩୨
माता मित्रं पिता चेति स्वभावात् त्रतयं हितम् |
कार्यकारणतश्चान्ये भवन्ति हितबुद्धय: ||
ବନ୍ଧୁମାତାପିତା    ଯିଏ ହିତଚିନ୍ତା
ସ୍ୱଭାବରୁ ମାତ୍ର କରେ;
କର୍ମର ସୁଫଳ    ଆଶାରେ କେବଳ
ହିତାକାଙ୍କ୍ଷୀ ଆନ ନରେ ॥ ୩୨
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୩୩
वदनं प्रसादसदनं सदयं दयं सुधामुचो वाच: |
करणं परोपकरणं येषां केषां न ते वन्द्या: ||

ସୁପ୍ରସନ୍ନ ବକ୍ତ୍ର    ଦୟାର୍ଦ୍ର ଅନ୍ତର
ମଧୁଝରା ଯାର ଗିର
ପରହିତେ ରତ,    ସମଗ୍ର ଜଗତ
ତା ଅଗ୍ରତେ ନତଶିର ॥ :୩୩
ବକ୍ତ୍ର= ମୁଖ;
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୩୪

अनाहूत: प्रविशति अपृष्टो बहु भाषते |
अविश्वस्ते विश्वसिति मूढचेता नराधम: ||
विदुरनीति

ବିନା ଆବାହନେ ପଶି ସଭାଜନେ
ବିନା ପ୍ରଶ୍ନେ କହେ କଥା
ଅବିଶ୍ୱସ୍ତ ନରେ ବିଶ୍ୱାସ ଯେ କରେ
ଉପଦ୍ରବୀ ମୂଢଚେତା ॥୩୪
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୩୫

गर्वाय परपीडायै दुर्जनस्य धनं बलम् |
सज्जनस्य तु दानाय रक्षणाय च ते सदा ||

ବିତ୍ତ, ବାହୁବଳ ଦୁର୍ଜନସମ୍ବଳ
ଦର୍ପ, ପର-ଉତ୍ପୀଡନେ;
ସଜ୍ଜନ ତାହାର କରେ ବ୍ୟବହାର
ପରହିତ ସମ୍ପାଦନେ ॥ :୩୫
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୩୬

यथा चित्तम् तथा वाचो यथा वाचस्तथा क्रिया: |
चित्तम् वाचि क्रियायांच साधुनामेकरूपता ||

ଅଛି ଯା ଚିନ୍ତନ କହୁ ତା ବଚନ
କ୍ରିୟା ହେଉ ବାକ୍ୟମତେ;
ମନୋବାକ୍ୟକୃତି ଦେଖ ସମସ୍ଥିତି
ସଜ୍ଜନଙ୍କ ଚର୍ଯ୍ୟାପଥେ ॥ :୩୬
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୩୭

विवेक: सह संपत्या विनयो विद्यया सह |
प्रभुत्वं प्रश्रयोपेतं चिन्हमेतन्महात्मनाम् ||

ଧନବୃଦ୍ଧି ସହ ବିବେକ ସଂରୋହ

ବିଦ୍ୟା ସହ ବିନମ୍ରତା
ଶିଷ୍ଟ ଆଚରଣ- ଯୁକ୍ତ ପ୍ରଭୁପଣ
କରିବାରେ ମହାନତା ॥ :୩୭
ସଂରୋହ= ଅଙ୍କୁରଣ, ଅଭିବୃଦ୍ଧି;
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

139

ସୁଭାଷିତ-୩୮
संसारविषवृक्षस्यज्ञन्ब्स्प; द्वे एव मधुरे फले |
सुभाषितं च सुस्वादु सद्भिश्र्च सह संगम: ||
ସଂସାର ଗହନ ବିଷବୃକ୍ଷବନ,
ଦୁଇ ତହିଁ ମିଠା ଫଳ,
ସୁମୁଖନିଃସୃତ ହିତକଥାମୃତ,
ସାଧୁସଙ୍ଗପୁଣ୍ୟବଳ ॥ :୩୮
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

143
ସୁଭାଷିତ-୩୯
मत्रस्य मा चक्षुषा सर्वाणि भूतानि समीक्षन्ताम् |
मित्रस्याहं चक्षुषा सर्वाणि भूतानि समीक्षे मित्रस्य चक्षुषा
समीक्षामहे ||
यजुर्वेद
ଦେଖୁଥିବ ମୋତେ ମିତ୍ରତା ସହିତେ,
ସର୍ବଭୂତେ ମୁଁ ସେ ଚକ୍ଷେ;
ଏ ପ୍ରେମବଲ୍ଲରୀ ଚୌଦିଗେ ସଞ୍ଚରି
ଲୋଟିଯାଉ ଧରାବକ୍ଷେ ॥ :୩୯
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୪୦
श्रृयताम् धर्मसर्वस्वं श्रृत्वा चैवावधार्यताम् |
आत्मन: प्रतिकूलानि परेषां न समाचरेत् ||
ଏ ଧର୍ମ ଗହନ କରିବ ପାଳନ,
ବୁଝ ଦେଇ ମନଯୋଗ:

ଯାହା ନିଜ ପାଇଁ      ପ୍ରତିକୂଳ ଭାଇ

ନ କର ଆନେ ପ୍ରୟୋଗ ॥ :୪୦

ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୪୧

इन्द्रं मित्रं वरूणमग्निमाहुरथो दिव्य: स सुपर्णाे गरूत्मान् |

ज्ञख्8216;एकं सद् विप्रा बहुधा वदन्तिज्ञख्8217; अग्निं यमं

मातरिश्र्वानमाहु: ||

ସୂର୍ଯ୍ୟନିଶିନାଥ-      ଅଗ୍ନିବ୍ୟୋମବାତ-

ବୃଷ୍ଟିଜଳେ ଧରାଧାମେ,

ଏକ ସର୍ବେଶ୍ୱର      ପ୍ରକଟ ସର୍ବତ୍ର,

ନର ପୂଜେ ନାନା ନାମେ ॥ :୪୧

ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୪୨

Aditya Chandra Vayu Agni Akash Prithvi Jala Hridaya Yama both Sandhikalas and Dharma, witness what man does.

ତୁମ୍ଭ ଉଚ୍ଚାରଣ      କର୍ମ ଆଚରଣ

ଭାବରାଜ୍ୟେ ବିଚରଣ

ନନାଦି ପ୍ରକୃତି      ମଧ୍ୟେ ଜଗପତି

ଜାଣୁଛନ୍ତି ଅନୁକ୍ଷଣ ॥ :୪୨

ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୪୩

पूर्वजन्मकृतं कर्म तद् दैवमिति कथ्यते |

तस्मात् पुरूषकारेण यत्नं कुर्यादतन्द्रित: ||

हितोपदेश

ପାଠ ତ କହନ୍ତି      ପୂର୍ବଜନ୍ମକୃତି

ଏ ଜନ୍ମେ କପାଳଲେଖା,

ଶୁଭକର୍ମ ବଳେ      ସଜାଅ ସକଳେ

ପରଜନ୍ମ ଭାଗ୍ୟରେଖା ॥ :୪୩

ଓଡିଆ ଅନୁବାଦ: ଲଲାଟେନ୍ଦୁ କବ

ସୁଭାଷିତ-୪୪

षड् दोषा: पुरूषेणेह हातव्या भूतिमिच्छता |
निद्रा तन्द्रा भयं क्रोध: आलस्यं दीर्घसूत्रता ||
ନିଦ୍ରାରେ ପ୍ରବୃତ୍ତି          ଶ୍ରମରେ ନିବୃତ୍ତି
          କାର୍ଯ୍ୟାରମ୍ଭ ବିଳମ୍ବନ
ସାଥେ ଭୟ କ୍ରୋଧ     ଆଳସ୍ୟପ୍ରମାଦ
          କର ବେଗେ ବିସର୍ଜନ ॥ :୪୪
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

149

ସୁଭାଷିତ-୪୫

ये केचिद् दु:खिता लोके सर्वे ते स्वसुखेच्छया |
ये केचित् सुखिता लोके सर्वे तेऽन्यसुखेच्छया ||
ଅଗଣିତ ଜନ          ବିଷଣ୍ଣବଦନ
          ସ୍ବାର୍ଥ ଚିନ୍ତା କରି କରି,
ପରହିତେ ମନ        ଲଗାଇ ସଜ୍ଜନ
          ଆନନ୍ଦେ ରହନ୍ତି ଭରି ॥ :୪୫
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

150

ସୁଭାଷିତ-୪୬

अभ्दि: गात्राणि शुध्यन्ति मन: सत्येन शुध्यति |
विद्यातपोभ्यां भूतात्मा बुध्दिर्ज्ञाम्पर्;ानेन शुध्यति ||
ଦେହଶୁଦ୍ଧି ଜଳେ       ମନ ସତ୍ୟ ବଳେ
          ବୁଦ୍ଧି ଶୁଦ୍ଧ ବିଶ୍ଳେଷଣେ,
ହୁଏ ଦେହଧାରୀ       ଶୁଦ୍ଧ ସଦାଚାରୀ
          ଶାସ୍ତ୍ରଜ୍ଞାନ ଆହରଣେ ॥ :୪୬
ଓଡିଆ ଅନୁବାଦ: ଲଲାଟେନ୍ଦୁ କବ

ସୁଭାଷିତ-୪୭

अभिवादनशीलस्य नित्यं वृद्धोपसेविन: |
चत्वारि तस्य वर्धन्ते आयुर्विद्या यशो बलम् ||
ବୟୋଗତଜନେ       ବିନୟ ବଚନେ
          ସେବ୍ୟମାନ ଯେଉଁ ବ୍ୟକ୍ତି,

ବଢି ଚାଲେ ତାର       ଜ୍ଞାନର ସମ୍ଭାର,
ଆୟୁ, ସଫଳତା, ଶକ୍ତି ॥ :୪୭
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୪୮
षड् गुणा: पुरुषेणेह त्यक्तव्या न कदाचन |
सत्यं दानम् अनालस्यम् अनसूया क्षमा धृति: ||
ସତ୍ୟ ଦାନ ଧୃତି        ଅନାଳସ୍ୟ କ୍ଷାନ୍ତି
ଅନସୂୟା ଷଡଗୁଣ,
ଏ ଜୀବନେ କେବେ   ନ ତେଜିବ ଲବେ
ରହିଥିବା ଯାଏ ପ୍ରାଣ। :୪୮
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୪୯
छायामन्यस्य कुर्वन्ति स्वयं तिष्ठन्ति चातपे |
फलान्यपि परार्थाय वृक्षा: सत्पुरूषा इव ||
ତାପେ ନିଜ କାୟା    ଜାଳି ଆନେ ଛାୟା
ଦିଏ ଯଥା ତରୁବର,
ତଥା ସାଧୁଜନ       ସହି ପ୍ରପୀଡନ
ପର ହିତେ ନିରନ୍ତର ॥ :୪୯
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୫୦
पात्रे त्यागी गुणे रागी संविभागी च बन्धुषु |
शास्त्रे बोद्धा रणे योद्धा स वै ज़ख् 8216;पुरूषज़ख्8217;
उच्यते ||
ପାତ୍ରେ କରେ ଦାନ       ଆନର ସଦ୍ଗୁଣ
ଦେଖି ଯିଏ ବନ୍ଧୁ ଜନେ
ଶୁଭ ବୁଦ୍ଧିଧନ            କରେ ବିତରଣ,
ଯୋଦ୍ଧା ସେହି ରଣାଙ୍ଗନେ ॥ :୫୦
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୫୧

शुचित्वं त्यागिता शौर्यं सामान्यं सुखदु:खयो: |
दाक्षिण्यञ्चानुरज्गिग्त;श्च सत्यता च सुहृद्गुणा: ||.

ତ୍ୟାଗ ପବିତ୍ରତା ଶୌର୍ଯ୍ୟ ସମାବସ୍ଥା
ଆପଦସମ୍ପଦ କାଳେ
ଶ୍ରଦ୍ଧା ବିନମ୍ରତା ପ୍ରକୃତ ବନ୍ଧୁତା
ଏ ଜଗତ କର୍ମଶାଳେ । ୫୧

ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୫୨

मा वनं छिन्धि सव्याघ्रं मा व्याघ्रा: नीनशन् वनात् |
वनं हि रक्ष्यते व्याघ्रौ: व्याघ्रान् रक्षति काननम् ||
ବ୍ୟାଘ୍ରେ କରି ଭୟ ବନବୃକ୍ଷଚୟ
କର ନାହିଁ ବିନାଶନ
ବନ ରକ୍ଷା କରେ ଶାର୍ଦୂଳନିକରେ
ବନଶ୍ଵାନ ରଖେ ବନ ।
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୫୩

कोकिलानां स्वरो रूपं स्त्रीणां रूपं पतिव्रतम्
विद्या रूपं कुरूपाणां क्षमा रूपं तपस्विनाम् । पंचतंत्र
ସୁମଧୁର ସ୍ୱର ସୌନ୍ଦର୍ଯ୍ୟ ପିକର
ଗୃହକର୍ମ ନାରୀ ବିଭା
ବିଦ୍ୟାରେ ଭୂଷିତ ଯେ ଜନ କୁତ୍ସିତ
କ୍ଷମା ତପସ୍ୱୀର ଶୋଭା ।
ଓଡିଆ ଅନୁବାଦ: ଲଲାଟେନ୍ଦୁ କବି

ସୁଭାଷିତ-୫୪

ଯେ ଗଣମାଧ୍ୟମ ନୀତିବ୍ୟତିକ୍ରମ
ଟିକି ନିକି ଦରଶାଏ
ଜନତନ୍ତ୍ର ଦେଶେ ରକ୍ଷାକବଚ ସେ;
ଚାଟୁକାର ନର୍କ ଯାଏ ।
ମୂଳ ଓଡିଆ: ଲଲାଟେନ୍ଦୁ କବି

ସୁଭାଷିତ-୫୫ ଛନ୍ଦ: ଇନ୍ଦ୍ରବଜ୍ରା
ବର୍ଣ୍ଣକ୍ରମ: L L S / L L-S / S L S / L L
ଗଣ:- ତଗଣ/ତଗଣ/ଜଗଣ/-LL
ସୁଭାଷିତ (175)
न भूतपूर्वं न कदापि वार्ता हेम्न: कुरंगो न कदापि दृष्ट: |
तथापि तृष्णा रघुनन्दनस्य विनाशकाले विपरीतबुद्धि: ||

ହେମାଙ୍ଗରାମା ବହିରେ ମିଳେନା
କର୍ଣ୍ଣେ ପଡେ ନା କିଛି ତାର ଲୀଳା
ତତ୍ରାପି ରାଜା ରଘୁବଂଶଚକ୍ରୀ
ତା ଲୋଭୁ ନେଲେ ଅତି ଦୀର୍ଘ କୀଳା ॥ ସୁ-୫୫

ଶବ୍ଦାର୍ଥ:- ହେମାଙ୍ଗରାମା= ସୁନା ହରିଣୀ; ତତ୍ରାପି= ତଥାପି; ରଘୁବଂଶଚକ୍ରୀ= ରଘୁକୁଳଶ୍ରେଷ୍ଠ ରାମ;
ବାଣୀପୁତ୍ର ୨୦୨୧୦୮୧୫୦୬୨୮

ସୁଭାଷିତ-୫୫
न भूतपूर्वं न कदापि वार्ता हेम्न: कुरंगो न कदापि दृष्ट: |
तथापि तृष्णा रघुनन्दनस्य विनाशकाले विपरीतबुद्धि: ||

ନାହିଁ ବିବରଣୀ ପୁସ୍ତକଟିପ୍ପଣୀ
ସୁବର୍ଣ୍ଣ ହରିଣୀ କଥା
କିନ୍ତୁ ରଘୁପତି ତୃଷ୍ଣାପୂର୍ଣ୍ଣମତି
ଡାକିଲେ ବିପତ୍ତି ବୃଥା ।
ବାଣୀପୁତ୍ର

ସୁଭାଷିତ-୫୬

अकालो नास्ति धर्मस्य जीविते चञ्चले सति |
गृहीत: इव केशेषु मृत्युना धर्मम् आचरेत् ||

କବିତା: ହିତ ତୁହି କରୁଥା ଉପଗତ ଲଗନେ
ଛନ୍ଦ: ପ୍ରହରଣକଳିତା
ବର୍ଣ୍ଣକ୍ରମ:
111/111/2<ଯତି=pause>11/111+12

ସମୟର ଝଡରେ ଇତି ଅତି ନିକଟେ
ଯମ ରହି ପଛରେ ହସୁଅଛି ବିକଟେ ।
ରଖି ତୁହି ଶୁଚିତା ମନ ଦିଅ ଧରମେ
କ୍ଷଣିକ ତୁ ନ ଵିତା ଅନୁଶୟ କରମେ ।
ଅନୁଶୟ= ଘୃଣାପଶ୍ଚାତ୍ତାପାଦି;
ଲଲାଟେନ୍ଦୁ କବି

ସୁଭାଷିତ-୫୭

**बलिभिर्मुखमाक्रांतं पलितैरंकितं शिरः ।**
**गात्राणि शिथिलायंते तृष्णैका तरुणायते**

ଆୟୁଚିହ୍ନ ମୁଖେ ସ୍ପଷ୍ଟ କେଶ ପକ୍ୱ ବୟୋଗତେ
ଜୀର୍ଣ୍ଣ ଦୁର୍ବଳ ସର୍ବାଙ୍ଗ, ଲୋଭ ହିଁ ଲବ୍ଧଯୌବନ ।

ଲଲାଟେନ୍ଦୁ କବି ୨୦୨୨୦୬୨୧

ସୁଭାଷିତ-୫୮

जीर्यन्ति जीर्यतः केशाः दन्ता जीर्यन्ति जीर्यतः
चक्षुःश्रोत्रे च जीर्येते तृष्णैका तु न जीर्यते ॥

ଦନ୍ତ ଦୁର୍ବଳ ବାର୍ଦ୍ଧକ୍ୟେ, କେଶ ଶୁଭ୍ର ଶିରେ ତଥା
ଚକ୍ଷୁ କର୍ଣ୍ଣାଦି ନିସ୍ତେଜ, ନିତ୍ୟ ବର୍ଦ୍ଧିତ ବାସନା ।

ଲଲାଟେନ୍ଦୁ କବି ୨୦୨୨୦୬୨୧

ସୁଭାଷିତ-୫୯ (163)

**किमप्यस्ति स्वभावेन सुन्दरं वाप्यसुन्दरम् |**
**यदेव रोचते यस्मै भवेत्तत्तस्य सुन्दरं ॥**

ତତ୍ତ୍ୱତଃ କିଏ ସୁନ୍ଦର, ଅସୁନ୍ଦର କିଏ ଅବା;
କୁତ୍ସିତ ପ୍ରିୟ କା ନେତ୍ରେ, କିଏ କାହାକୁ ସୁନ୍ଦର ।

ସୁଭାଷିତ-୬୦

**यथा हि एकेन चक्रेण**

**न रथस्य गतिर्भवेत् |**

**एवं पुरूषकारेण**

**विना दैवं न सिध्यति ||**

==============

କୋମଳ ଅନୁବାଦ -1

ଛନ୍ଦ,: ଚୌପାହି; ଯଥା: ଦେବି-
ସୁରେଶ୍ୱରି ଭଗବତି ଗଙ୍ଗେ..
(ମାତ୍ରିକ ସମଛନ୍ଦ)
ପର୍ବତ ସମ ଥିବ ବିତ୍ତର ସ୍ୱାମୀ
ଯୌବନ ପୂରିତ ବହୁ ଅନୁଗାମୀ
ଉଦ୍ୟମବର୍ଜିତ ସେ ନର ହେଲେ
ଏକ ଚକେ ରଥ କିପରି ବି ଚାଲେ ।

କୋମଳ ଅନୁବାଦ -2

ଛନ୍ଦ: ପଥ୍ୟାବକ୍ତ୍ର ଅନୁଷ୍ଟୁପ୍
(ମାତ୍ରିକ ଅର୍ଦ୍ଧସମ ଛନ୍ଦ)
ଗୋଟିଏ ଚକରେ କେବେ ରଥ ଚାଲି ନ ପାରିବ ।
ପୁରୁଷତ୍ୱ କି ବା କାର୍ଯ୍ୟେ ନିରୁଦ୍ୟମ ଥିଲେ ନର ।

==
କଠୋର ଅନୁବାଦ – 1

ପଥ୍ୟାବକ୍ତ୍ର ଅନୁଷ୍ଟୁପ୍
(ମାତ୍ରିକ ଅର୍ଦ୍ଧସମ ଛନ୍ଦ)
ଅଣ୍ଡିରା ଷେଣ୍ଢ ହେଲେ ହେଁ
ମରିବାକୁ ପଡେ ଖଟି,
କୁଢିଆ ତଣ୍ଟିରେ କିମ୍ପାଁ
ମୁଆଁ ଚୁଣ୍ଟାଇ ଦେବ କେ?

କଠୋର ଅନୁବାଦ - 2
ଛନ୍ଦ: ଇନ୍ଦ୍ରବଜ୍ରା (ବାର୍ଣ୍ଣିକ ସମଛନ୍ଦ)

ଯେତେ ଥିଲେ ହେଁ ଧନଯୌବନାଦି
ସାମର୍ଥ୍ୟ ଦେହେ ରହିଥାଉ ଯେତେ
ଉଦ୍‌ଯୋଗ ଆଦୌ ନ କଲେ ପ୍ରମାଦୀ
କୀଳା ହିଁ ଦେବାକୁ ଥିବେ ସମସ୍ତେ ।
==
Lalatendu Kabi 20220916

ସୁଭାଷିତ-୬୧ (174)

174

ग्रहाणां चरितं स्वप्नो अनिमिज्ञल्त;ाानि उपयाचितम् |
फलन्ति काकतालीयं तेभ्य: प्राज्ञाम्प;ा: न बिभ्यति ||

କାକ ବସିବାରେ ଡାଳ ଭାଙ୍ଗି ପାରେ:
ଅବିଶ୍ୱାସ୍ୟ କଥା ଅତି
ଶୁଭାଶୁଭ ପ୍ରାପ୍ତି ଦେବ ଗ୍ରହ କୃତି
ଭାଳୁଥାଏ ମୂଢମତି ।୧
ଗ୍ରହ କିମ୍ବା ଦେବ କାହାର ଉଦ୍ଭବ
ପିଶାଚ ଗର୍ଭରୁ ନୁହେଁ
ପରମାତ୍ମାସୃଷ୍ଟ ତେଣୁ ରୁଷ୍ଟତୁଷ୍ଟ
ଅଯଥା ନୁହନ୍ତି ଦୁହେଁ ।୨

-ବାଣୀପୁତ୍ର-

ଲଲାଟେନ୍ଦୁ କବି ୨୦୨୨୦୯୧୮

ସୁଭାଷିତ-୬୨

कृपणेन समो दाता न भूतो न भविष्यति |
अस्पृशन्नेव वित्तानि य: परेभ्य: प्रयच्छति ||

ନାହିଁ କେ ଅନ୍ୟ ପୃଥ୍ୱୀରେ
ଦାତା କୃପଣ ଯେସନ;
ଟଙ୍କାଟେ ନ ଛୁଏଁ ହାତେ,
ମଲେ ସେ ଲୁଣ୍ଠନେ ସରେ ।